# ଶ୍ରୀଜଗନ୍ନାଥ ଗୀତିକା



ପ୍ରଥମଭାଗ

ସଂଗ୍ରାହକ – ସଂଗୀତଜ୍ଞ ଶ୍ରୀ ଶ୍ୟାମସୁନ୍ଦର କର
ଶ୍ରୀ କାଶୀନାଥ ମହାସୁଆର (ଓଡ଼ିଆ)

ଶ୍ରୀଜଗନ୍ନାଥମନ୍ଦିର ପରିଚାଳନା କମିଟିପକ୍ଷରୁ
ପରିଚାଳକ ଶ୍ରୀ ପରମାନନ୍ଦ ତ୍ରିପାଠୀଙ୍କ ଦ୍ୱାରା ପ୍ରକାଶିତ
୧୯୭୯



# ଶ୍ରୀ ଜଗନ୍ନାଥଙ୍କ ଗୀତିକା

## ଶ୍ରୀ ଆରତହରଣ ଜଣାଣ

( ରାଗ—ଖରହରପ୍ରିୟା )

ରଘୁନାଥ

ଆହେ ପ୍ରଭୁ ଜଗନ୍ନାଥ !

ବାରେ ଫେଡ ମୋ ଆରତ

ଦୁଃଖ ଦେଖି ମହାପ୍ରଭୁ ! କର୍ଣ୍ଣେ ଦେଇଛ କି ହସ୍ତ । ଘୋଷା ॥

ଗଜ ଡାକିଲା ଜଳରେ ତାହା ଶୁଣିଲ କର୍ଣ୍ଣରେ

ଚକ୍ରକୁ ପେଷିଲ ଖରେ ଗ୍ରାହ ପ୍ରାଣ କଲ ହତ ॥ ୧ ॥

କୁରୁପତି ସଭାତଳେ ଦ୍ରୌପଦୀ ଆତଙ୍କ କାଳେ

କୋଟି ବସ୍ତ୍ର ଦେଇ ହେଳେ ରଖିଲ ତାର ମହତ ॥ ୨ ॥

ଆତୁର କଥାଏ ପୁଣି ଆତଙ୍କେ ଡାକେ ମୃଗୁଣୀ

ବ୍ୟାଧକୁ ଜୀବନେ ହାଣି ଫେଡ଼ିଲ ତାର ଆରତ ॥ ୩ ॥

ଅତି କଷ୍ଟେ ଡାକେ ହରି ! ଦୁଃଖ ନ ଗଲା ମୋହର

ବାରେ ଶୁଣ ମୋ ଗୁହାରି କହେ ଦ୍ୱିଜ ରଘୁନାଥ ॥ ୪ ॥



ଦୁଇ

# ଶ୍ରୀ ଜଗବନ୍ଧୁ ରଥାଙ୍ଗପାଣି ଜଣାଣ

( ରାଗ—କଲ୍ୟାଣୀ )

ଯୁବରାଜ ହରେକୃଷ୍ଣ ସିଂହ

ଜଗବନ୍ଧୁ ରଥାଙ୍ଗପାଣି !
ରତ୍ନସିଂହାସନ - ମଣ୍ଡଳମଣି ! । ଘୋଷା ।

ମହୋଦଧି ତୀରେ ଶ୍ରୀନୀଳକନ୍ଦରେ
ସଙ୍ଗେ ଘେନି ରଙ୍ଗେ ଭାଇଭଉଣୀ
କରିଛ ବିଜୟ ପ୍ରଭୁ ଦୟାମୟ
କୋଟିମତ୍ତସିଂହ ବିକ୍ରମଠାଣି ॥୧॥

ପତିତଙ୍କ ହାତେ ଅନୁରାଗ ଚିତ୍ତେ
ହସି ହସାଉଛ ଜଗତ ପ୍ରାଣୀ
ଅତିମନୋହର ବେଶ ନଟବର
ଚକାନୟନରେ ମୃଦୁ ଗୃହାଣୀ ॥୨॥

ଅପୂର୍ବ ମୂରତି ପଦ୍ମାଳୟା ପତି
ଅଗତିଙ୍କ ଗତି ବିଶ୍ୱ ବିନ୍ଧାଣୀ
ପାତକୀ ମାନଙ୍କ ଅଶେଷ ପାତକ
ପକାଉଛ ଚକ୍ର ଦାଢ଼ରେ ହାଣି ॥୩॥

ଆହେ ଆର୍ତ୍ତତ୍ରାଣ ! ଗରୁଡ଼ ଆସନ !
ମୁଁ କି ଜଣାଇବି ନ ସ୍ଫୁରେ ବାଣୀ
ହରେକୃଷ୍ଣ ସିଂହ ଯୁବରାଜ ଲେହ,
ହୃଦୟ ଦ୍ରବାଇ ନ କଲ ପାଣି ॥୪॥

ଛନ୍ଦ

# ଉଦୋଣ

( ବାଜଲଣି ବାଜବ ବୃତ୍ତେ )

ଅଞ୍ଜନ ପାପ ନେହ                    କଞ୍ଜ ନୟନ ମାହ
ଭଞ୍ଜନ କର ଦୁଃଖ ନିରଞ୍ଜନ ।
ଗଞ୍ଜନ କୁରୁବଳ                    ରଞ୍ଜନ ଗୋପବାଳ
ସଞ୍ଜ ବହ୍ନାଗ୍ନି ଘନ କୁଞ୍ଜବନ ।।
ନାଶିଛ ଅଘା ବକା,                    ସୁଦାମା ଦ୍ୱିଜ ସଖା
ଧନଞ୍ଜୟଙ୍କୁ ଦେଇଲ କେତେ ମାନ ।
କଦମ୍ବ ମହୀରୁହ                    କେଳି କୁଞ୍ଜ ନିବହ
ରାସ ରସିକ ଗିରି ଗୋବର୍ଦ୍ଧନ ।। ୧ ।।
ସେ କେତକୀ ପାଖୁଡ଼ା                    ସଙ୍ଗତେ ଶିଖୀଚୂଡ଼ା
କେତେ ଶୋଭାରେ ହରି ନିଏ ମନ ।
ତେଜିଲେ ବେଦ ଶ୍ରୁତି                    ରହିବ କା ଗୋ ଧୃତି
ଶୁଣି ମଧୁର ମୃଦୁ ବେଣୁ ସ୍ୱନ ।। ୨ ।।
ଶ୍ରୀମୁଖ ଅରବିନ୍ଦ                    ଝରାଏ ମକରନ୍ଦ
ଅନୁସରି ଶୃଙ୍ଗାର ଗୁଣ ଗାନ ।
କୋଟି ଲବଣ୍ୟନିଧି                    ଗଢ଼ିଛନ୍ତି କାହୁଁ ବିଧି
ଧନ୍ୟ ବିନ୍ଧାଣୀ କଲା ଅଭିଧାନ ।। ୩ ।।
ବୋଲଇ ଗଜପତି                    ରାମଚନ୍ଦ୍ର ଭୂପତି
କରି ଦୂରି ଯାତନା ଘନ ଘନ ।
ମାଡ଼ି ଅଛନ୍ତି ଜରା                    ଆହେ ଦୁଃଖ ପାଶୋରା
ହେଉ ଭଲ କରୁଣା ନବଘନ ।। ୪ ।।

---

ଗୀତ

# ଜଣାଣ

( ପ୍ରିୟସଖା ମିତ୍ର ତୋଟେ କଣ୍ଠରେ ଗୀତେ )

ପୂର୍ଣ୍ଣଚନ୍ଦ୍ର ମିଶ୍ର

ହେ ପଦ୍ମମୁଖ, ଥାଇ ନୀଳାଚଳେ
ଜୀବନକୁ ରହିଗଲା ଦୁଃଖ (ଘୋଷା)

କୁସୁମ କୋମଳ ତନୁ ସରକ୍ତ ପାରନ୍ତ ମନ
କୁଳାଶ ସଙ୍ଗେ ଅତନୁ କଳପନା ଭ୍ରମୁ ବନୁ
ହେବ କାହା, ଅନୁଦ୍ଧ ଅନମାନ ଲକ୍ଷ୍ୟ ॥ ୧ ॥

ମୁ ତ ପଟଣ ଅଧିକାର ସରବେ ଥିବା ପ୍ରକାର
ନୋହୁଛି ମୋ ମନ ଦୂର ଏ ଭବ ଶୋକ ସାଗର
ହୁଅ ସାହା, ନୋହ ଆଉ ଏଥର ବିମୁଖ ॥ ୨ ॥

ଯୁବା ବୟସେ ବିଚ୍ଛେଦ ଲକ୍ଷ ଆଶା ଅବସାଦ
ସମ୍ପଦ ହୋଇ ବିପଦ ଦେଉଛି ଜୀବନେ ଖେଦ
ପରିହର, ଦୋଷମାନ କି ବୋଲିବେ ଲୋକ ॥ ୩ ॥

ଥାଅ ରହି ସିଂହାସନେ ଭ୍ରମି ଚଉଦ ଭୁବନେ
ନ ଦେଖି ଦେଖ ନୟନେ ଜାଣିବ ଅବଶ୍ୟ ଜଣେ
ମୋହପର, ନଥିବଟି ଆଉ କାହା ବକ୍ଷ ॥ ୪ ॥

# ଶ୍ରୀ ପତିତପାବନ ଜଣାଣ

( ରାଗ—କାମ୍ଭୋଜୀ )

ବୀରକେଶରୀଦେବ ଗଜପତି

ପତିତ ପାବନ ବାନା ଆଉ କେତେ ବେଳକୁ
ଭାସି ଗଲି ଭବ ଜଳେ ନାବ ଦିଅ କୂଳକୁ (ଘୋଷା )

ରୋପିବାର ବୃକ୍ଷ ଗୋଟି କାଟୁଅଛ ମୂଳକୁ
ତିନି ପୁରେ ଅପକୀର୍ତ୍ତି ଉଦ୍ଭବ ଆଦିମୂଳକୁ ॥୧॥

ଦୂରେ ଥାଇ ଡାକ ଦେଲେ ଡେରିଥାଅ କର୍ଣ୍ଣକୁ
ନିକଟରେ ନ ଶୁଣିଲ ମୋ କର୍ମ ଅବଳକୁ ॥୨॥

ଲକ୍ଷେ ଯୋଜନରେ ଗଜ ଡାକ ଦେଲା ତୁମ୍ଭକୁ
ନକ୍ର ନାଶିବାକୁ ଚକ୍ର ଦେଲ ପେଶି ଜଳକୁ ॥୩॥

ନକ୍ଷତ୍ର ଦିହୁଡି ଜଳେ ସନ୍ଧ୍ୟାଦୀପ ବେଳକୁ
ଲମ୍ବିଛି ଦୀପ୍ତମଣିମାଳ ପଦ୍ମପାଦ ତଳକୁ ॥୪॥

ଯୋଗିଜନମାନେ ହୃଦେ ଧାଉଛନ୍ତି ଯାହାକୁ
ଭଣିଲେ ବୀରକେଶରୀ ଆଶା ପାଦତଳକୁ ॥୫॥

ଛଅ

# ଜଣାଣ

( ମାନ୍ୟ ଚକାନୟନଙ୍କୁ ବୃତ୍ତେ )

ଚନ୍ଦ୍ରପାଣିପଟ୍ଟନାୟକ

ମଣିମା ପଢ଼ିଲ ଏଥର ଜଣା

ଏତେ ଦିନ ଆହା, ଭୁଲିଥିଲ ଯାହା,
ହୋଇ ଏକେଡେ ବାଟ ବଣା ॥

ଲୋକ ମୁଖେ ଯେତେ, ବୋଲାଉଛ ସତେ,
ପ୍ରଭୁତ କରୁଣା ସିନ୍ଧୁ
ସହସ୍ର ବରଷ, ମଧ୍ୟରେ କେ ଲେଶ,
ଲଭିଅଛି ଦୟା ବିନ୍ଦୁ ॥ ୧ ॥

ଉଦ୍ଧବ, ଅକ୍ରୁର, ପ୍ରହ୍ଲାଦ ଆବର,
ଧ୍ରୁବ ଯେ ସୁଦାମା ଦ୍ୱିଜ
ଥିବେ ସେ ସ୍ତାବକ, ଅବା ନିଜ ଲୋକ
କହିବାକୁ ସିନା ଲଜ ॥ ୨ ॥

ତୁମ୍ଭେ ଦାରୁବ୍ରହ୍ମ, ଲଗାଇଛ ଭ୍ରମ
ସବୁ କରପାର ବୋଲି
ପ୍ରଭୁର ସୁଆଙ୍ଗ, ଲୋକ ଦେଖା ଢଙ୍ଗ
ଆଜି ଯା କହୁଛ ଖୋଲି ॥ ୩ ॥

କହୁଛି ଏ ଦୀନ, ଶୁଣ ନାରାୟଣ
ହେଲ ବେଳ ଅବସାନ
ନବଯୁଗ ପୁଣି, ହେଉ ଚନ୍ଦ୍ରପାଣି, କର ଅନନ୍ତ ଶୟନ ॥ ୪ ॥

ସାତ

# ଶ୍ରୀ ଚକାନୟନ ଜଣାଣ

( ରାଗ—ରସକୁଲ୍ୟା )      ଚନ୍ଦନହଜୁରୀଙ୍କ

ଚକାନୟନଙ୍କୁ ପଡ଼ିତ କେହ୍ନ
ତକାଇ ଖର ନିଶ୍ୱାସ ପକାଇ
ଡ଼କାପକାଇ ଗରୁଡ଼ ପଛରେ
ବକାରି ! ମୋ ଆର୍ତ୍ତି ଶୁଣ ସତ୍ୱରେ ହେ
ଡ଼ଙ୍କା ବାଜୁଛି ମହିମା ହେ
ଠକାଇ କରି କର୍ଣ୍ଣେ ଗିର ନ ଶୁଣ
କାହିଁକି ବଚନକର୍ମା ହେ ।୧।
ବଟପୁଟ ବାସୀ ଆରତ ତ୍ରାଣ !
ଘଟ ଘଟକେ ରହି ସବୁ ଜାଣ
ଖଟନ୍ତି ଯେଉଁ ଚରଣେ କମଳା
ହଟ କର ମୋ ଦୁନ୍ଦ ନ ଗଲା ହେ
ନଟବର-ବେଶଧାରି ହେ !
ସଙ୍କଟରେ ପ୍ରଭୁ ! ଶ୍ରୁତି ଉତ୍ତର ଶୁଣ
ଏ ଦୀନ-ଜନ ଗୁହାରି ହେ ।୨।
ମନ୍ଦରଧର ନୀଳଗିରିବାସି !
କନ୍ଦରବାସୀ ପ୍ରାୟେ ଅଛ ବସି
ପୁରନ୍ଦରନେନ୍ତ ଧାତା ପୁରନ୍ଦର
ବନ୍ଦନ କରନ୍ତି ଯେଉଁ ପୟର ହେ
ଛନ୍ଦ ଛାଡ଼ି ଦେବରାଜେ ହେ !
ନନ୍ଦନନ୍ଦନ ଶ୍ରୀଚରଣରି ବନ୍ଦେ
ଚନ୍ଦନହଜୁରି ଭଜେ ହେ ।୩।

# ଶ୍ରୀ ପହୁଡଲାଗି ଭଜନ

( ରାଗ—କାଟମ୍ବୋଜୀ, ତାଳ—ଝୁଲ୍ଲ )

ଦୀନକୃଷ୍ଣ ଦାସ

ଜଗବନ୍ଧୁ ଅଙ୍କେ ରତନ ପଲଙ୍କେ
ପହୁଡ଼ଲେ ସିନ୍ଧୁ ଜେମା ଦେଇ ॥ ଘୋଷା ॥
ଦିବ୍ୟ ସୁବାସ ଜଳ ସୁନା ଝରିରେ
ଦିବ୍ୟ ସୁବାସ ପଇଡ଼ ତଳେ ଥୋଇ
କୁସୁମ ବଞ୍ଚଣୀ ଧରି କେ ବଞ୍ଚଇ
ଟେକିନା ସଖୀ ହେଲେ କୁହାକୁହି ।୧।
ପୁଗ ଖଇର ଅଳାଇଚ ଲବଙ୍ଗ
କାତ ଶ୍ରୀଫଳ କରଣ ଏକ ସଙ୍ଗ
ବଟଏ କରଣ ବଡ଼ଆ ସଜାଡ଼ି
ରତ୍ନବଟାରେ ଖଞ୍ଜିଲ ନେଇ ।୨।
କେ ଡବାଲେ ଅନା ଆରେ ମୀନ ନୟନା
ଘନ କୋଳେ କି ଚନ୍ଦ୍ର ଚକୋର ସିନା
ଝଳା ଅଙ୍ଗରେ ମରକତ କୁନ୍ଦନ
ମୀନାକୁ ଫୁଙ୍କି ଦେଉଛନ୍ତି ବନ୍ଧା ।୩।
କହେ ଦୀନକୃଷ୍ଣ ସେ ଶୋଭା ଦର୍ଶନ
ପଡ଼ିବ ଚରଣେ ହୋଇବେ ପ୍ରସନ୍ନ
ଯେଉଁ ଚରଣ କୋଟି ବ୍ରହ୍ମା ମୁନୀନ୍ଦ୍ର
ଯୋଗେନ୍ଦ୍ର ନ ପାନ୍ତି ଧ୍ୟାୟି ଧ୍ୟାୟି ।୪।

# ଜଣାଣ

( ନୂଆ ନଟପଟଳ ବୃତ୍ତେ )

ଶ୍ରୀଗଜପତିଙ୍କ ନାମରେ

ଜଗନ୍ନାଥ କାଲେ ଯା ଅନାଥରେ
ଆଉ କେ ହରିବ ଦୁଃଖ
ଜଗତର ଏ ପରା ପଡ଼ିଗଲେ ଧରା, କା ବୋଲିବେ ପଦ୍ମମୁଖ
ଯୋଗୀ ଅନୁରାଗୀ କହନ୍ତି କା ଲାଗି
ଶରଣ ରକ୍ଷଣ ବାନା ।
ଅନ୍ଧକାର ଘୋଟି ଗଲେ ବକ୍ଷ ଫାଟି
ନଗ୍ନହାନ୍ତି ମୋରେ ଅନା ॥ ୨ ॥
ସାହା ଚଉବାହା ନୋହିଲେଟି ଯାହା
ଦେଖି ମୋ ଜୀବନ ବ୍ୟଥା
ଚଉଦିଗ ପୁରି ଯିବଟି ପ୍ରସରି
ଲୁଚିବ କାହିଁ ଏ କଥା ॥ ୨ ॥
ଯେତୁ ଅପବାଦ, ନମଣି ପ୍ରମାଦ
ଦେଖାଇବ ମନସାଧ
ନାହିଁ ପ୍ରତିକାର, ହୃଦମୂ ମାତର
ଲଭୁଥିବ ଅବସାଦ ॥ ୩ ॥
ଗଜପତି ବୋଲେ, ପ୍ରଭୁ ଯେବେ ଭଲେ
ନଶୁଣିବେ ମୋ ଗୁହାରି
ଚପାନ୍ତୁ ମୋ ନିଶ୍ୱାସ, ଯୋଡ଼ୁ ମୋ ବିଶ୍ୱାସ,
ବଡ଼ ଦୟାବନ୍ତ ହରି ॥ ୪ ॥



# ଜଣାଣ

( ତୁମ୍ଭପରି ମୋ ହୃଦୟ ବୁଝେ )

୪   ଦୟାମୟ, ଦୟାସିନ୍ଧୁ ପଦେ
ଲଗାଇ ଥିଲି ମୁଁ ମନ ଲକ୍ଷ୍ୟବେଧେ
ରଖିଥିଲି ଆଶା ଗୋପନ ବନ୍ଧୁତା
ଜାଣେ କନ୍ଦାଇଛ କେତେ ସିନ୍ଧୁସୁତା
କାଳକୁ ରହିଛି ଶ୍ରୀ ଗୁଣ୍ଡିଚା କଥା, ଭୁଲି ମନ ନୁହେଁ ଥୟ ।୧।
ଜଗବାଙ୍କୁ ପ୍ରେମ ପୋଷିଥିଲି ମନେ,
ଚନ୍ଦ୍ରାବଳୀ ଦଶା ପଡ଼ିଗଲା ଧ୍ୟାନେ
ଭାଳେ ନିରନ୍ତର ମନକଥା ମନେ, କେମନ୍ତେ ବା ନିର୍ଭୟ ।୨
କପଟ ରଖି ହେ ତୁମ୍ଭଙ୍କୁ ଭଜିବା
କେଉଁ ଭରସାରେ ପାଞ୍ଚିବ ମୁଁ ଅବା
ମନେପଡ଼େ ଅଭିମନ୍ୟୁ ଜୀବ ଦିବା, କେମନ୍ତେ କରିବ ଜୟ ।୩।
ଭାବିବାରୁ ନାଥ ଘୋର ଦୁଃଖ ଶୋକ
ହାଟିବାରୁ ହୋଇ ନୀରସ ଅଧିକ
ବାରି ପାରୁଛି ମୁଁ ଜନାଇଁ ଶ୍ରୀମୁଖ ଯାହାତ୍ମ୍ୟ ଅଭିପ୍ରାୟ ।୪।

ଏଗାର



# ଜଣାଣ

( ପ୍ରାଣ ସଙ୍ଗିମାରେ ନେତ୍ରାନନ୍ଦ ବୃତ୍ତେ )

ଏବେ ଗୁନ୍ଥୁଛି ମୁଁ ଦୁଃଖେ, ଉତ୍କଣ୍ଠ ମାଳା
ଗଳେ ଦେବ ଚକାଡୋଳା ।। ଘୋଷା ।।

ଲୋଚନ ଲୋତକ ଧାରେ    ଖଞ୍ଜିଛି ଆନନ୍ଦ ଭରେ
କୋଟି କମ କରିବାରେ ଜଞ୍ଜାଳ ଜାଳା ।। ୧ ।।

ଆଶାର କୁମୁଦ କଳି    ନିରାଶାର ପତ୍ରାବଳୀ
ମିଶାଇ ସୁଷମା ମୋହୁ ସମ୍ପଦ ବାଳା ।। ୨ ।।

ମଣ୍ଡିଛି ପଦକେ ଜବା    ଦିଶୁଛି କେମନ୍ତେ ଶୋଭା
ମାଳାକାର ମୁଁ ଏ ଭବ ବନ୍ଧାଣୀ ଶାଳା ।। ୩ ।।

ବାର

# ଇଷ୍ଟ ପ୍ରଶଂସା

:— ଦୀନକୃଷ୍ଣ ଦାସ

ଜଗବନ୍ଧୁ ପର ଜଣେ ସାମନ୍ତ ନାହିଁ ନାହିଁ ତ ।

ଚଉଦ ଭୁବନ ବାରତା ଜାଣନ୍ତି
ଚକ୍ଷୁରେ ଦେଖନ୍ତି ଆରତ । ୦ ।

ଯେତେବେଳେ କୃଷ୍ଣ ଗୋପପୁରେ ଥିଲେ
ଅକ୍ରୁର ଆସିଣ ଗଲାତ
ଗାଈ ଦୁହୁଁ ଦୁହୁଁ କେଣ ଫିଟିଗଲା
ଚତୁର୍ଭୁଜ ହେଲେ ଅନନ୍ତ । ୧ ।

ସୁଗ୍ରୀବର ସଙ୍ଗେ ମଇତ୍ର ହୋଇଣ,
ବାଳୀକୁ ବିନାଶ କଲେତ
ରାବଣ ଭ୍ରାତା ଯେ ଶରଣ ପଶିଲା
ଲଙ୍କାଗଡ ତାକୁ ଦେଲେତ । ୨ ।

କୁରୁ ସଭାତଳେ ଦ୍ରୌପଦୀ ଡାକିଲେ
କୋଟି ବସ୍ତ୍ର ଦିଆଇଲେତ
ଭାରତ ଯୁଦ୍ଧରେ ଭରତଆ ପକ୍ଷୀ
ଘଣ୍ଟି ଘୋଡାଇ ରଖିଲେତ । ୩ ।

ଏମନ୍ତ ସାମନ୍ତ ତ୍ରିଭୁବନେ ନାହିଁ
ନାଶନେ ଆରତ ଆରତ
କହେ ଦୀନକୃଷ୍ଣ ଦାସ ସେ ଶ୍ରୀକୃଷ୍ଣ
ପଦ୍ମପାଦେ ଚିତ୍ତ ଧାଇଁତ । ୪ ।

ତେର

# ଲୀଳାମୟ୍ କଣାଣ

( ରାଗ-କାମୋଦୀ ) — ଗୌରଚରଣ

ଲୀଳାମୟ ଏ ଲୀଳା ତୁମ୍ଭର ହୋ କେମନ୍ତେ ବୁଝିବ ନାହିଁ
ହର ବ୍ରହ୍ମାଙ୍କୁ ଯେ ଅଛ ଅଗୋଚର ଅନନ୍ତ ଅନ୍ତ ନ ପାଇ ।
। ଘୋଷା ।

ଇନ୍ଦ୍ର ବରୁଣ କୁବେର ଆଦ ଯେତେ ଛନ୍ତି ଦଶ ଦିଗ ପାଳେ
ବାଣୀ ରମା ଉମା ତୁମ୍ଭର ମହିମା ଜାଣିନପାରିଲେ ତାଳେ । ୧।
କୋଟି ୨ ଋଷି କଲ୍ପେ କଲ୍ପେ ବସି ଧ୍ୟାନେ ହେଉଛନ୍ତି ବଣା
ମୁଁ ଛାର ଅଧମ କ କର ବୁଝିବ ତୁମ୍ଭ ମାୟା ବୁଝାମଣା । ୨ ।
କାହାକୁ କେବେ କି ନକରୁଛ ହର ଦୟାଳୁ ସାମନ୍ତ ମଣି
ମାରିବା ତାରିବା ଦୁଇକଥା ଭଲା ବହିଛ ସାରଙ୍ଗ ପାଣି । ୩ ।
କେଉଁ ଗୁଣ ବା ତୁମ୍ଭର ବାହୁନିବ ଆହେ ମହାଭୁଜ ଟେକା
କେ ପିନ୍ଧି ବୁଲୁଛି ଖଣ୍ଡିଏ ଦରଭା କାହା ମୁଣ୍ଡେ ସୁନାଠେକା ।
କେହୁ ଦାନା ପାଇଁ ହୁଏ ହାଇଁ ୨, କେ ଭୁଞ୍ଜଇ ଶାଳି ଅନ୍ନ
ଖଗ ମଣି ଶିଖି ରଙ୍ଗ ଗୌର ଦୁଃଖ ନ ଶୁଣି ମୂଦିଛ କର୍ଣ୍ଣ । ୪ ।

ଚଉଦ

# ନୀଳଚକ୍ର ଦର୍ଶନ

ଗୌରଚରଣ

ନୀଳଚକ୍ରେ ହେ ଦେଖ ଉଡୁଛି ବାନା
ପତିତ ପାବନ ନାମଟି ଯା ନାଁ ॥ ଘୋଷା ॥

ଆସ ଆସ ବୋଲି ପାତକୀ ମାନଙ୍କୁ
ଡାକୁଅ ପରି ସଙ୍ଗାତ ଅନା
ନେତ ଧ୍ୱଜା ବର ଉଡ଼ି ଫର ଫର
ଉଡାଇ ଦେଉଛି ଭବ ଯାତନା ॥ ୧ ॥

ପଞ୍ଚ କୋଶୀ ଯାଏଁ ଜନେ ଦେଖାଯାଏ
ଦର୍ଶନେ କଲ୍ମଷ ହୁଅଇ ଚୁନା
ଚଉଦ ବ୍ରହ୍ମାଣ୍ଡ କର ତାଙ୍କ ଲୀଳା
ଶଙ୍ଖନାଭି କ୍ଷେତ୍ରେ ବଚନେ ସିନା ॥ ୨ ॥

ପାପ ଛଡା ପୁରେ ବାସ କରିବାକୁ
ଯାହାକୁ ତାହାକୁ ନୁହଇ ମନା
ଆଚଣ୍ଡାଳ ବିପ୍ର ପଙ୍କ୍ତିରେ ଭୁଞ୍ଜିବା
ବଡ ଆଚମ୍ବିତ ଲାଗଇ କିନା ॥ ୨ ॥

ଗୌରଦ୍ୱିଜ ଭଣି ଶ୍ରୀ କ୍ଷେତ୍ରେ ରହଣି
ପାଇଁ କରୁଥାଇ ସଦା ଭାବନା
ସତେ ହେବ ସାହା ବନ୍ଧୁ ଆଉ ବାହା
ସମ୍ପୂର୍ଣ୍ଣ କରିବ ମନ କାମନା ॥ ୪ ॥

## ପନ୍ଦର

# ମନଃଶିକ୍ଷା

ପଦୁମଣି ମହାପାତ୍ର

ଅବିରତେ ହରି ଭଜରେ ମାନସ, ଅବିରତେ ହରିଭଜ ।
ମାଧବ ଚରଣ, କମଳ ସହିତ ଅବଲମ୍ବେ ତୁହି ହେଜରେ ।
॥ ଘୋଷା ॥

ନବୀନ ଜଳଦ-ଛବି ନଟବର ପବିତ୍ର ପଦ ସରୋଜ
ଅବର ହୋଇଛୁ ଶତବାର ସେଥିଁ ମଧୁପାନେ-
ଭୃଙ୍ଗ ସାଜରେ ॥ ୧ ॥

ଗବୀଶଧ୍ୱଜ ଅବ୍ଜଜ ଅହିରାଜ ଆଦି ଅମର ସମାଜ
ସବିନମ୍ର ଭରେ କରନ୍ତି ଗୁଣରେ ସ୍ତବ ହୋନ୍ତି ଯାଙ୍କୁ-
ରୋଜରେ ॥ ୨ ॥

ଗର୍ବୀଗର୍ବ ଗଞ୍ଜା ଛବିଶ ନାମ ଯା ପବିଧର ଦେବରାଜ
ଦ୍ରବିଗଲା ତାରୁ ଦମ୍ଭ ଅହଂକାର ଶରଣାର୍ଥୀ ପଦ-
କଞ୍ଜରେ ॥ ୩ ॥

ହରି ଆହ୍ଲାଦି ସହିତେ ଦେବୀ ଦେବ ଦାନବାଦୀଙ୍କଯେ ପୂଜ୍ୟ
କହ ପଦୁ ମଣି ନ ବସନ୍ତୁ ସେହି ନନ୍ଦାତ୍ମଜ ନାମ-
ବ୍ରଜରେ ॥ ୪ ॥

ଷୋହଳ

# ମଙ୍ଗଳାଚରଣ

ଯଦୁମଣି ମହାପାତ୍ର

ବ୍ରଜ ବଲ୍ଲବୀ ବୃନ୍ଦନାୟକ ହେ
ପ୍ରଣତ ସର୍ବ ସୁଖ ଦାୟକ ହେ
ବାଲ୍ଲବ ରାଜ କୁମାର ବୃନ୍ଦା ଅରଣ୍ୟର ମାର
ବ୍ରଜେଶ୍ୱରୀଙ୍କ ଦୁଃଖ ଦାୟକ ହେ । ଘୋଷା ।
ସ୍ଫୁଟ ସରସୀ ରୁହ ଲୋଚନ ହେ
ଅଖିଳ ଭବ ଭୟ ମୋଚନ ହେ
ସ୍ୱ ପରିବାର ସମୂହ, ପାଳିତଟସୌମ୍ୟ ବିଗ୍ରହ
କୁଞ୍ଜେନ୍ଦ୍ରା ପଦାବ୍ଜ ଅର୍ଚ୍ଚନ ହେ । ୧ ।
ନବ ତରୁଣୀ ନବ ନାଗର ହେ
ନଟ ତିଳକ ରସ ସାଗର ହେ
ନୟନା ନନ୍ଦ ଘନ ସୁନ୍ଦର ଶ୍ରୀ ଅଙ୍ଗଘନ
ନୀଳେନ୍ଦୀବର-ନେତ୍ର ସ୍ୱାଗର ହେ । ୨ ।
ଯଦୁ ନନ୍ଦନ ଜଗତ୍ ବନ୍ଦନ ହେ
ଯାମଳାର୍ଜ୍ଜୁନ ତରୁ ଭଞ୍ଜନ ହେ
ଯଦୁମଣିର ଖେଦ ହର ଯାଦବ ନାଥ
ଶୋକ ପାପ ତାପ ବିମର୍ଦ୍ଦନ ହେ । ୩ ।

———

# -ଜଣାଣ-

କାହିଁଗଲେ ମୁରଲୀଫୁଙ୍କା—ବୃତ୍ତେ   ଆର୍ତ୍ତବନ୍ଧୁ ଦାଶ

ମାଗୁନାହିଁ କିଛି ମୁଁ ଆଉ,   ମାଗୁଛି ହେ ପ୍ରଭୁ ଏତିକି ହେଉ
କରୁଣା ବାରିଧି କରୁଣା କଣାରୁ
କାଣିଚାଏ ହେଲେ ମୋ ଭାଲେ ଥାଉ

ପଦସେବା ବ୍ରତରେ ରତ   ଅବିରତ ରହୁ ମୋ ଚିତ୍ତ
ଯେବେ ଏ ଜୀବନ ଯିବ ଥିବ ଧ୍ୟାନ,
ହରି ହରି ନାମ ମୋ କଣ୍ଠ ଗାଉ । ୧ ।

ନିତି ନିତି ଅର୍ଚ୍ଚନା ଫୁଲ   ଗୁନ୍ଥି ଗୁନ୍ଥି ବନ୍ଦିବ କାଳ
ଜଳ ଦିଅ, କର ଚନ୍ଦନ କର୍ପୂର
ଲାଗି ଆଳତିକି ନିତି ସଜା । ୨ ।

ରସ ଆସ୍ୱାଦନେ ବିଳାସୀ   ରସନା ମୋ ହେଉ ଲାଳସୀ
ମରଣ ବାଞ୍ଛିତ ଚରଣ ଅମୃତ
ସିନ୍ଧୁର ବିନ୍ଦୁଏ କେବଳ ପିଉ । ୩ ।

ପଞ୍ଚସ୍ୱନ ମୁରଲୀ ଗୀତ   ରଞ୍ଜୁ କର୍ଣ୍ଣ ମୋର ନିରତ
ଲଭ ସେ ପୀୟୂଷ ଲଭୁ ଏ ଆୟୁଷ
ଶାନ୍ତି ବାରିଧାର ବରଷା ହେଉ । ୪ ।

ପାଦ ବେନି ଚଳୁ ସନ୍ତତ   ଭେଟିବାକୁ ପଙ୍କଜ ନେତ୍ର
ଅନ୍ତିମ ସମୟ ହେଲେ ବିଶ୍ୱମୟ
ସୁବେଶ ନୟନ ଦର୍ଶନ ପାଉ । ୪ ।

---

# ଶ୍ରୀ ଜଗତପତିଙ୍କ ଶରଣ ଭଣାଣ

( ରାଗ—କାମବର୍ଦ୍ଧନୀ )

କବିସୂର୍ଯ୍ୟ ବଳଦେବରଥ

କ୍ଷୀରମସ୍ତୁ-ସିନ୍ଧୁ-ଜେମା-ପ୍ରାଣବନ୍ଧୁ-ତୁମ୍ଭେ ତ ଜଗତ-ପତି
ଟେକି ସମଦୃଷ୍ଟି-ପତାକାକୁ ପୁଣି ଏ କି ପକ୍ଷପାତ-ରୀତି

ହେ ମହାପ୍ରଭୁ !

କେ କି କଲା ମୁ ନ କଲି ?
କେ କି ଦେଲା ଅବା ମୁଁ ଅବା ନ ଦେବା
ଯେଣୁ ଏତେ ସବୁ ହେଲି ହେ । ୧ ।

ମୃଗଯୁବତୀଙ୍କୁ ରଖିଲ ଯେ ନାଶି ମୃଗୟୁ-ବିଦ୍ୱେଷ-ଦାଉ
ଚରଣପଙ୍କଜ-ସ୍ମରଣ ବିନା ସେ କିସ କରିଥିଲା ଆଉ

ହେ ମହାପ୍ରଭୁ !

କୁମ୍ଭୀର ଗ୍ରାସନ୍ତେ ଗାଜ
ଜଣେ କହିବାରେ ଅନେକ-ପରଜା
ମନେ ଢଳ ସିନା ମାତ୍ର ହେ । ୨ ।

# ଉଣେଇଶ

ନୃପସଭାମଧ୍ୟେ ଅସ୍ଥିର ହୁଅନ୍ତେ ଦ୍ରୁପଦସୁତା ଆବର
ଧାନରୁ ତ ଆନ କିଛୁ କରିବାର କାନ ଶୁଣି ନାହିଁ ମୋର
ହେ ମହାପ୍ରଭୁ !
ହୃଦେ ଯେ ଥାଅ ନିରତେ
ଲଞ୍ଚ ଦେଇଥିଲେ କାଞ୍ଚନ କେତେ କି
ପାଞ୍ଚ ପଣ୍ଡୁ ରାଜ ସୁତେ ହେ । ୩ ।
ନଳକୁବରଙ୍କ ଚରିତ ଯେ ବୁଝେ ଜଳପୁଅଛନ୍ତି ଏବେ
ପ୍ରହ୍ଲାଦଙ୍କୁ ମହା ଆହ୍ଲାଦ ଅର୍ପଣ କରିଛ ପରା ପୂରବେ
ହେ ମହାପ୍ରଭୁ !
ମୁନିଙ୍କ ଆଶ୍ରମ ଶିଳା
ତୁମ୍ଭଙ୍କୁ କି ଉପକାର କରି ରୂପବତୀ
ହୋଇ ପୁଣ ବିଳସିଲ ହେ । ୪ ।
କବିରବି ଗାପ୍ତଗୁରୁ ଯୋଡ଼ି କରଯୁଗକୁ ଛାମୁରେ କହେ
ଭଲ ଅବା ମନ୍ଦ କରିବାକୁ ତ ମୁଁ ମୋହର ଆୟତ୍ତ ନୁହେ
ହେ ମହାପ୍ରଭୁ !
ସବୁ ତୁମ୍ଭ ଇଚ୍ଛା ସିନା
ରଖ ବା ନ ରଖ ମୋହର ଗତି ତ
ପତିତ ପାବନ - ବାନା ହେ । ୫ ।

# ଇଶାଣ

ଅଭିମନ୍ୟୁ ପାଢ଼ୀ

କଳା ମୁଖ ହେ, ଏକି ଲୀଳା ସୁନ୍ଦର ?
ବଳା ବଳ ହେଲା, ଦୁଃଖ ନଦୀ, ଭେଳା
ଦେବ ନାହିଁ ସେକି ହେବ ସୁନ୍ଦର । ୦ ।
ଗଳାଇ ଦେଇଛ ଗଳାରେ ଯେ ମିଛ
ଫାଶ ଛନି ମାୟା ମୋହ ମଦର
ଝଳାଇ ହଅନ୍ତ ମୁଁ ଅବା ସେ ମାଳା
କାମ କ୍ରୋଧ ଲୋଭ ଗଣ୍ଠି ତହିଁର । ୧ ।
ବଳା ପିନ୍ଧାଇଛ କର ଚରଣରେ
ଦେଇ ସୁତ ସୁତା କାନ୍ତା ସୋଦର
ପଳାଇବ କାହିଁ କଟୀରେ ମେଖଳା
ବାନ୍ଧିଛ ଜଞ୍ଜାଳ ରଜ୍ଜୁ ଆବର । ୨ ।
ଗିଳାଇଛ ଯେଉଁ ହଳାହଳ ବିଷ
ବିଷୟ ବାସନା ଯାରେ ଉଦର
ଢୋଳାଇ ଦେଇଛ ତନୁ ପରେ ଏବେ
ବ୍ୟାଧି ବେଦନାର ଭୃଙ୍ଗ ମନ୍ଦର । ୩ ।
ଖେଳାଇବାକୁ ମୋ ମନ ନାହିଁ ଆଉ
ଲଦା ହୋଇଅଛି ଚିନ୍ତା ମନ୍ଦର
ହେଳା କଲେ ଆଉ ଦୀନବନ୍ଧୁ ଥାଉ
ବୁଝିଯିବା ସାର ହେବ ଏଥର

ଏକୋଇଶ

# ଜଣାଣ

ରାଗ—ହୃଟସେନ

କବିସୂର୍ଯ୍ୟ

କେହ୍ନେ ସରଳ, ପ୍ରଭୁ ପତିତ ପାଳନ୍ତି କେଣସାଳ,
ଯା'ଠାରେ ପୂରଛି ଦୁଃଖୀଜନ ଦୟା ନଖଠାରୁ ଶିଖାଯାଏ
(ପଦ)

କି କହିବା ଆଉ ତାଙ୍କ ଶ୍ରୀଚରଣ
ଅନୁସରଣ ଗୃହୁଟିକ,
ବଳାଉଛନ୍ତି ବଳୀକ୍ଷଣ ଆଗରେ
ଜଗତ ବିଜୟ ଭୂଷାକ । ୧ ।
ସାନକୁ ବଡ କରିବାରେ ଉଡ଼ାଇଅଛନ୍ତି
ଧ୍ୱଜ ମଞ୍ଜରୀକ,
ଦେଖ ନାଗ ନର ଗନ୍ଧର୍ବ କିନ୍ନର
ଉପରେ ଧ୍ରୁବ ନଗରୀକି । ୨ ।
କି କହିବ ତାଙ୍କ ପୀରତ
କରିବା କୀରତଚନ୍ଦ୍ର ମାଧୁରୀକି,
ରଙ୍କ ବିପ୍ର ପାଦ ଧୁଆଇ ଯା ଦେଲେ
ରମା କରେ ରନ୍ଧାଏ ରିକି । ୩ ।
କ୍ଷମା ସାଗର ଯେ ତାହାଙ୍କୁ ଭଜିଲେ
କାଳ କିଙ୍କରଙ୍କୁ ଡରିକି,
ବୋଲେ କବିସୂର୍ଯ୍ୟ ଆନ ଉପାୟକୁ
ଯେଉଁଥି ଗିରି ଧରିକି । ୪ ।

---

# ମହାବାହୁ ଜଣାଣ

ରାଗ — କାମୋଦୀ

କବିସୂର୍ଯ୍ୟ ବଳଦେବରଥ

କମଳ ବାସିନୀ ପ୍ରାଣବାନ୍ଧବ ହେ,
ଆର୍ତ୍ତତ୍ରାଣ କମନୀୟ କଳାମୁଖଚନ୍ଦ୍ର ।
କମ୍ବୁମଧ୍ୟପୁଷ୍ପ ନୀଳବସୁନ୍ଧରାଧରାଚୂଳ,
ଗୁହ୍ୟାଗୁହ୍ୟ ବହ୍ନାସି ପାରନ୍ଦ୍ର, ହେ ।
ମହାବାହୁ !
କଉଣପକୁଳକ୍ଷୟଦଣ୍ଡ, କୃପଣ କାମିତ,
କଳ୍ପବୃକ୍ଷ, କହ୍ଳନୋହ୍ଳବା କଦନ !
ସିନ୍ଧୁ ନିମଜ୍ଜନଜନ କର୍ଣ୍ଣଧାରବର ରକ୍ଷ ରକ୍ଷ ହେ ।। ୧ ।।

ଖଣ୍ଡପରଶୁ ବନ୍ଦନ, ମୁରଲୀ ସୁସାବଧାନ,
ଖଣ୍ଡମଣିମଣ୍ଡଳ ମଧ୍ୟ ବାସୀ ।
ଖଗାଧିପଧ୍ୱଜ ବ୍ରଜଖଞ୍ଜନନେତ୍ରାସମାଜ,
ଚଞ୍ଚଳା କୌତୁକ ଅଭିଳାଷୀ ହେ ।
ମହାବାହୁ ।
କ୍ଷୀଣଜନଙ୍କର ଅନ୍ତଃସାର, ଖଣ୍ଡିତ ମେଦିନୀ ଭସ୍ମ ଭାର
ଖର ମୟୂଖର ପୁତ୍ର ଚରକର,
କରପତ୍ର ଦର ନିର୍ବାରଣ ଦୟାକର ହେ । ।। ୨ ।।

ଓଳଇଣ

ହରିହସ୍ତ ବହୁ୍ତଙ୍କ, ହଂସରଥାଦ୍ୱ କୁଠକି,
ହଟି ରହୁନାହିଁ ମୁଁ ସ୍ୱମୁଖେ ।
ହର୍ମ୍ୟତଳେ ଥିବାଯାକେ, ହାସ୍ୟାସ୍ପଦ ନୋହିଲେକେ,
ହରିନେବ କାଳ କିଛି ସୁଖେ ହେ ।
ମହାବାହୁ !
ହରଗଣ ନୋହି କ୍ଲେଶ ଜାଳେ,
ହରେ ହରେ ବୋଲି ଅନ୍ତଃକାଳେ ।
ହସିହସିଯିବ ହରିଦଶ୍ୱସୁତଙ୍କ ନଗରୀ,
ସୀମା ମାତ୍ର ନଦେଖିବ ଡୋଳେ ହେ । ॥ ୩ ॥
କ୍ଷିତିକି ବହିବା ଅହି, କ୍ଷମ ନୋହିବାରୁ କହି,
ନପାରନ୍ତି ଯାହାଙ୍କ ପୁରତେ ।
କ୍ଷମା ପୀୟୂଷ ସମୁଦ୍ର, ହେବାରୁ ମୁଁ ଅତି କ୍ଷୁଦ୍ର,
ଶ୍ରୀଛାମୁରେ ଜଣାଇଲି ଏତେ ହେ ।
ମହାବାହୁ !
କ୍ଷମ ଅପରାଧ ଏତ ନୁହେଁ, କ୍ଷମାଧିପବାନାଧିବାସ ହେ.
କ୍ଷମାକର ଆଜ୍ଞା ହେବ, କ୍ଷିତିସୁର ବଳଦେବ କାତର
ପଦ୍ମଗୁରୁ କହେ ହେ ॥ ୪ ॥

# ଜଣାଣ

ସିଂହାରୀ ଦାମୋଦର କର ।

ରେ ମନ କରନା କେବେ-ଅଭିମାନ
ସଦା ଭଜ କୃଷ୍ଣ ଭଗବାନ ରେ । ୦ ।

ଗରବ ସରବ ତେଜ    ଶ୍ରୀହରି ପଦରେ ମଜ
ଧଜ୍ଜତ କର ଚଉଁ ଗୁମାନରେ । ୧ ।

ଏ ଶଠ ଦୁନିଆଁ ଭାଇ    ଜ୍ଞାନ ନୟନ ରୁ ଫେଇ
ଦୁଅ ବେଳ ଥାଉ ସାବଧାନ ରେ । ୨ ।

ରତନ ପାଷାଣ ରାଜ    ଭିଲ-ଭେଲକୁ ସମୁଜି
କର ସବୁ ହୃଦେ ଅବଧାନରେ । ୩ ।

— —

